# ଭାସା ନିତି ବାବଦେ ଅର୍ନ୍ତରାସ୍ଟ୍ରିୟ୍ ଗବେସଣା


**ଡ. ଜୋଗା ସିଂ**

ପି.ଏଚ.ଡି (ୟୋର୍କ, ୟୁକେ)


କୋସଲି ଅନୁବାଦ

ସାକେତ ସ୍ରିଭୁସଣ ସାହୁ



ବେନି ପବ୍ଲିକେସନ୍ସ

**BHASA NITI BABDE ANTARRASTRIYA GABESANA**

( Kosali Essay )

Original Punjabi: Dr Joga Singh

Kosali translation from Hindi : Saket Sreebhushan Sahu

Published by Beni Publications

First Edition: October 2016



**ଭାସା ନିତି ବାବଦେ ଅର୍ନ୍ତରାଷ୍ଟ୍ରିୟ ଗବେସଣା**

**(କୋସଲି ପ୍ରବନ୍ଧ)**

**ମୁଲ ପଂଜାବି: ଡ. ଜୋଗା ସିଂ**

**କୋସଲି ଅନୁବାଦ ହିନ୍ଦିରୁ : ସାକେତ ସ୍ରିଭୁସଣ ସାହୁ**

**ପ୍ରକାସକ:  ବେନି ପବ୍ଲିକେସନ୍ସ**

**ପହେଲା ସଂସ୍କରଣ: ଅକ୍ଟୋବର୨୦୧୬**

# ୧

# ମାତୃଭାସା ହିଁ ଚାବି କାଠି
# ସିଖ୍ୟା, ଗ୍ୟାନ-ବିଗ୍ୟାନ ଆର ଇଂରାଜି ସିଖବାର

## ଭୁମିକା

ଗଲା ମାସ, ଭାରତ ସରକାର ଗୁଟେ ଅଧିସୁଚନା ଜାରି କରିଥିଲେ ଜେନଥି କି କେନ୍ଦ୍ରିୟ ପ୍ରସାସନିକ ସେବା ପରିଖ୍ୟା ଥି ଭାରତିୟ ଭାସା ମାନକର ବିସେନେ କିଛି ପଛୁଆ ନିଆମ ସାମିଲ ଥିଲା । ସେ ଅଧିସୁଚନା ଥି ଇଂରାଜି ଭାସା କେ ଜହ ମାଏନ ଦିଆ ହେଇ, ଇଂରାଜି ବାଧ୍ୟତା ମୁଲକ ପରିଖ୍ୟା ର ମାର୍କ ବିଚାର କରି ମେଧା ତଯ଼ କରାହେବା । ଇଟା ଫେର ଥରେ ଭାସାଗତ ଚର୍ଚା କେ ଉଖରେଇ ଦେଇଛେ । ଇ ଆଲେଖ ଭାରତ ସରକାର ର ଜାରି ହେଇଥିବା ଅଧିସୁଚନା ର ଜବାବରେ ଲେଖା ହେଇଛେ ।

ଭାସାବିତ ଆର ଭିନେ ଭିନେ ରାଜନିତିଆ ମାନକର କଡା ଆପାତି ଲାଗି ସରକାର ଅଧିସୁଚନା କେ ମାର୍ଚ ୧୫ ରେ ଫିରେଇ ନେଲେ । ଭାରତିୟ ଭଦ୍ରଲୋକ ମାନକର ଭାରତିୟ ଭାସା ପ୍ରତି ଇ କିସମର ଭେଦଭାବ ତାକର ଉପନିବେସର ଭାଇ ମାନକର ନୁ ବି ଖରାପ । ଭାସା ର ପ୍ରସ୍ନ ସିଖ୍ୟା, ବୈଗ୍ୟାନିକ ବିକାସ, ସାଧାରଣ ଗ୍ୟାନ, ସଂସ୍କୃତି, ପରଂପରା, ଆର ସବୁ ନୁ ମାଥେବର, ସଠିକ ଖବର ହିସାବେ ଗୁଟେ ବିଦେସି ଭାସା ସିଖବାର ଠାନୁ ଭିନେ ନି କରି ହୁଏ । ଇ ଆଲେଖ

ଇ ସବୁ କଥା ଉପରେ ପେସାଦାର ଆର୍ନ୍ତଜାତିକ ମତାମତ ର ସାରାଂସ ରଖବାର ଚେସ୍ଟା କରବା ।

ଜଦି ବି ଭାରତିୟ ଭାସା କେ ଇଂରେଜ ମାନକର ଛାଡିକରି ଗଲା ଉତାରୁ ବି, କେଭେ ବି ତାର ଦରକାରି, ଅଧିକାରିକ, ମାଏନତା ଦିଆ ନି ହେଇ ତାକର ଖରାପ ଅବସ୍ଥା ଦିନୁ-ଦିନକେ ଆର ଖରାପ ହେଇଛେ ଇ ଗଲା ୩୦ ବଛରେ । ଇଂରାଜି ଭାସା, ଭାରତିୟ ଭାସା ମାନକୁ ପାଠ ପଢାବାର ମାଧ୍ୟମ ନୁ ବି ଖେଁସରେଇ ଦଉଛେ ବିଦ୍ୟାଲୟ ମାନକୁ । ଜଦି ବି ଇତାର ପଛର ଅସଲ କାରଣ ଭାରତିୟ ଭଦ୍ରଲୋକ ମାନକର ଭୁଲ ଧାରଣା ଆର ମତଲବ, ତଲେ ଦିଆହେଲା ବାଗିର ମିଛ ଜୁକ୍ତି ମାନେ ବନେଇଥିସନ ତାକର ସପଖ୍ୟରେ:

୧) ଜେ ଇଂରାଜି ବିଗ୍ୟାନ ଆର ଗ୍ୟାନ ର ଭାସା, ଆର ସେଥିର ଲାଗି, ଇ ଖେତ୍ରରେ ବଢବାର ଲାଗି ଇଂରାଜିରେ ପୋଖତ  ହେବାରଟା ନିହାତି ଦରକାର ।

୨) ଇଂରାଜି ଆର୍ନ୍ତଜାତିୟ ଜୋଗାଜୋଗ ଆର ବେପାର ର ଭାସା, ଆର ଇତାର ବିନା ଆର୍ନ୍ତଜାତିୟ ଲେନଦେନ ସଂଭବ ନେଇସେ ।

ଇ କିସମର ଜୁକ୍ତି,  ଭାସା ଆର ବିଗ୍ୟାନ, ଗ୍ୟାନ, ସିଖ୍ୟା ଆର ଆର୍ନ୍ତଜାତିକ ଭାସାଗତ ଦୁରୁସ ର ସଂପର୍କ କେ ବିଲକୁଲ ନି ଜାନିକରି ବାହାରିଥିସି । ଇ ଆଲେଖ ର ଉଦେସ୍ୟ ସେ ମୁର୍ଖତା ନୁ ମୁଖା କେ ଖୁଲି ଦେବାର ।

# ୨

# ସିଖ୍ୟା ଆର ମାତୃଭାସା

ସବୁନୁ ପହେଲା ଇହାଦେର ସମିଆଁ ଥି ବିକାସ ଲାଗି ଜହ ଦରକାରି ଗ୍ୟାନ-ବିଗ୍ୟାନ ଆର ଭାସା ର ସଂପର୍କ ବିସେନେ ଆର୍ନ୍ତଜାତିକ ଗ୍ୟାନ ଆର ଅଭିଗ୍ୟଁତା ଉପରେ ନଜର ଦେବାର ଉଚିତ । ତଲ ର ଉକ୍ତି ସଂଜୁକ୍ତ ରାସ୍ଟ୍ର ସଂଘ ର ସିଖ୍ୟା, ବିଗ୍ୟାନ ଆର ସଂସ୍କୃତି ର ସଂଗଠନ (ୟୁନେସ୍କୋ) ର ବହି "ସିଖ୍ୟା ଥି ସ୍ଥାନିୟ ଭାସା ର ବେଭାର" ନୁ ନିଆ ହେଇଛେ ।

"ଇଟା ଆପେ-ଆପ ପ୍ରମାଣିତ କି ଛୁଆ ର ଲାଗି ସିଖ୍ୟା ର ସବୁନୁ ବଢିଆ ମାଧ୍ୟମ ତାର ମାତୃଭାସା । ମନୋବୈଗ୍ୟାନିକ ଆଧାର ଥି ଇଟା ଏନ୍ତା ସଫଲ ଚିହ୍ନ ମାନକର ଏନ୍ତା ତରିକା ଏ ଜେନଟା ପରିପ୍ରକାସ ଆର ବୁଝବାର ଲାଗି ତାର ମସ୍ତିସ୍କ ଥି ତାର ସୁକେ କାମ କରସି, ସାମାଜିକ ଆଧାର ଥି ଜେନ ଲୋକମାନକର ଗୁସ୍ଠି ସାଂଗେ ତାର ସଂପର୍କ ଥିସି ସେମାନକର ସାଂଗେ ଏକମନ ହେବାର ସାଧନ ଆଏ, ସିଖ୍ୟା ର ଆଧାର ଥି ସେ ମାତୃଭାସା ର ମାଧ୍ୟମ ଥି ଗୁଟେ ଅଜନା ମାଧ୍ୟମ ଠାନୁ ଜଲଦି ସିଖସି । (ୟୁନେସ୍କୋ, ୧୯୫୩:୧୧)

ୟୁନେସ୍କୋ ର ଇ ମତ ବଡା ଗୁହେର ଗବେସଣା ର ଫଲ ଏ । ୟୁନେସ୍କୋ ୧୯୬୮ ଥି ତାର ବହି ଥି ଲେଖିଛେ:

ସିଖ୍ୟା ଲାଗି "ମାତୃଭାସା ର ବେଭାର ଜେତକି ଦୁର ସଂଭବ ହଉଛେ କରା ଜିବାର କଥା" (ପୃସ୍ଠା ୬୯୧) ।

ଆର ସଂଜୁକ୍ତ ଦେସ ର ୨୦୦୪ ର ବିକାସ ରିପୋଟ ଥି ଇଟା ଅଛେ: ଫିଲିପାଇନ ନ ଦ୍ୱି-ଭାସି ସିଖ୍ୟା ନିତି ର ଦୁଇ ଭାସା (ଟାଗାଲୋଗ ଆର ଇଂରାଜି) ଥି ପାରଂଗମ ଛାତ୍ର ସେ ଛାତ୍ର ମାନକୁ ପଛାଡେ ପକେଇ ଦେସନ ଜେନମାନେ ଘରେ ଟାଗାଲୋଗ ଥି କଥା ନି ହୁଅନ । (ପୃସ୍ଠା ୬୧)

ଆର ତଳର ଧାଡି ମାନେ ମୁଖିଆ କରି ଇଂରାଜି ଭାସି ଦେସ ଆମେରିକା ବିସେ ଥି:

ଆମେରିକା ନ ଜେନ ନବଓ ଭାସା ର ଛୁଆ ମାନକୁ ପ୍ରାଥମିକ ସ୍ଥର ରେ ତାକର ପହେଲା ଭାସା (ନବଓ) ଆର ତାକର ଦୁସରା ଭାସା (ଇଂରାଜି), ଦୁହି ଭାସା ଥି ପଢା ଗଲା, ସେ ଛୁଆମାନେ ନବଓ ଭାସାର ସେ ଛୁଆ ମାନକୁ ପଛାଡେ ପକେଇ ଦେଲେ ଜେନମାନକୁ ଖାଲି ଇଂରାଜି ଥି ପଢାଗଲା ।  (ଇ ଆଲେଖ ଥି ଦୁସରା ଭାସା ଆର ବିଦେସି ଭାସା ସମାନ ଅର୍ଥ) ।

ଭାରତିୟ ଇଂରାଜି ଭକ୍ତ ମାନକୁ ଗୁହାରି କି ଇଟା ଜାନବାର କେ ଚେସ୍ଟା କରୁନ କି ଆମେରିକା, କାନାଡା, ନ୍ୟୁଜିଲାଂଡ ଆର ଅସ୍ଟ୍ରେଲିଆ ବାଗିର  ମୁଖିଆ କରି ଇଂରାଜି ଭାସି ଦେସ ଥି ହେତକି ବଡ ସଂଖ୍ୟା ଥି ଇସକୁଲ ମାନକୁ  ସିଖ୍ୟା ର ମାଧ୍ୟମ ଇଂରାଜି ନେଇଁସେ ।

ଆଗକେ ଦେଲା ଧାଡି ଇ ବିସେ ନ ଦୁନିଆ ଭର ଭିନ ଭିନ ଠାନେ ହେଲା ଗବେସଣା ନୁ:

ଇ ହିସାବେ ମୋଦିଆନୋ (୧୯୬୮,୧୯୭୩) ର ମେକସିକୋ ନ କରାହେଲା ଗବେସଣା, ସକତନବ-କାଂଗସ  ର ଫିନଲେଣ୍ଡେ ନ ହେଲା ଗବେସଣା ଆର ସେ ଲାଟିନ ଆମେରିକା ର ଗବେସଣା, ଜାହାର ସାରାଂସ ଗୁଦସିଂସକି

(୧୯୭୫) ଥି ଦିଆ ହେଇଛେ, ଇ ସବୁ ର ପରିଣାମ ମତେ ଏକେବାଗିର ଲାଗସି । ଇ ଗବେସଣା ଥି ଜନା ପଡିଛେ କି ସେ ଛୁଆ ମାନକର ବଡ ଅନୁପାତ ଜିଏ ନିଜର ସିଖ୍ୟା ଠାନର ଭାସା ଥି ମୁଲ କରସି, ନିଜର ମାତୃଭାସା ଥି ସିଖ୍ୟା ର ବିକାସ କରସି ଆର ଅଲଗା ବିସୟ ଆର ଅଲଗା ଭାସା ଉପରେ ଅଲଗା ଛୁଆ ମାନକର ନୁ ଜହ ଭଲ କରି ପକାସି, ଜେନମାନକୁ ଖାଲି ଦୁସରା ଭାସା ତି ପଢା ଜାଏସି । (Tucker,1977:3) । (ଇନ ଦୁସରା ଭାସା ର ଅର୍ଥ ବିଦେସି ଭାସା ଏ)

ତଲର ଧାଢିମାନେ ଫିନଲେଣ୍ଡ ରୁ ସ୍ୱିଡେନ କେ ଗଲା ଛୁଆମାନକର ଉପରେ ହେଲା ଗବେସଣା ନୁ । ଇ ଗବେସଣା ଥି ଦେଖବାର କେ ମିଲିଛେ, ଫିନଲେଣ୍ଡ ର ଜେନ ଛୁଆମାନକର ମାତୃଭାସା ଉପରେ ଦଖଲ ଥିଲା ସେମାନକୁ ସିଖ୍ୟା ପାଏବାର ଥି ଭଲ ଥିଲା । ଚାହେ ସ୍ୱିଡେନ ନ ସିଖ୍ୟା ସ୍ୱିଡିସ ଭାସା ଥି ଦିଆଜଉ ।

ନିରିକ୍ଷଣ ନୁ ଇଟା ସାମନା କେ ଆସିଛେ କି ଫିନିସ ଭାସା ଥି ଦଖଲ, ଗଣିତ ଥି ପାଏଲା ମାର୍କା ସାଂଗେ ସିଧା ସଂପର୍କ ଅଛେ । ସ୍ୱିଡିସ ର ମୁକାବିଲା ଥି ଫିନିସ ଗଣିତ ଥି ମାର୍କା ପାଏବାର ଲାଗି ଜହ ଜରୁରି ଲାଗୁଛେ । ଚାହେ ଗଣିତ ସ୍ୱିଡିସ ଥି ପଢା ଜଉଥଉ । ଫଲାଫଲ ଇ ନଜରିଆ ର ସମର୍ଥନ କରୁଛେ କି ଗଣିତ ରେ ଭଲ ମାର୍କା ଆନବାର ଲାଗି ମାତୃଭାସା ରେ ସିଖ୍ୟା ଜରୁରି ଏ । ଜିବ ବିଗ୍ୟାନ, ରସାୟନ ବିଗ୍ୟାନ, ଆର ଭୌତିକ ବିଗ୍ୟାନ ଥି ବି ପରିକଲ୍ପନା ଭାବନା ଜରୁରି ହେସି । ଇ ବିସେ ମାନକୁ ବି ନିଜର ମାତୃଭାସା ଉପରେ ଦଖଲ ରଖୁଥିବା ଛୁଆ ସେ ଛୁଆ ମାନକର ନୁ ଭଲ କରସନ ଜେନ ଛୁଆମାନେ ନିଜର ମାତୃଭାସା ଉପରେ ଦଖଲ ନି ରଖନ । (Skutnabb-Kangas, Toukomaa, 1976), (Paulston, 1977:94)

ଆମେରିକା ବିସେ ନେ ଆର ଗୁଟେ କଥା ଦେଖୁନ:

"ଏନ୍ତା ଧିରେ ଧିରେ ଆମେରିକା ନ ଲୋକ ଏନ୍ତା ବୁଝି ବସଲେ ନ କି ବିନ ଇଂରାଜି ଭାସା ନାଗରିକ କେ ଇଂରାଜି ସିଖ୍ୟା ଢାଁଚା ଥି ପକାଲେ ଆର ତାକର ମାତୃଭାସା ର ବିକାସ ଉପରେ ଧ୍ୟାନ ନି ଦେଲେ ପରିଣାମ ଠିକ ନି ହେବାର ।" (Tucker, 1977:3)

ଘାନା ନ କରାହେଲା ଗୁଟେ ଗବେସଣା ଥି ଦେଖବାର କେ ମିଲିଛେ କି, "ଘାନା ନ ଖାଲି ସତକଡା ୫ ଛୁଆ ସେକେଣ୍ଡରି ସିଖ୍ୟା ଆର ଜାଏରେ ନ ଖାଲି ୩୦ ସତକଡା ଛୁଆ ପହେଲା ୪ଟା ସେଣି ପଢିପାରସନ ।"

"ଇ ଧାରଣା ବି ଭୁଲ କି ଜଦି ଛୁଆ କେ ଇଂରାଜି ନି ଆସେ ତ ସେ ବିଗ୍ୟାନ ଆର ଗଣିତ ର ବିସୟ ସିଖି ନି ପାରେ । କାରଣ, ବିଗ୍ୟାନ ର ପରିକଲ୍ପନା କେନସି ଗୁଟେ ଭାସା କି ସଂସ୍କୃତି ସେ ବଂଧା ନି ହେଇ । ରୁସି, ଜର୍ମାନି, ଆର ଫରାସି ଲୋକ ମାନକୁ ନିଜର ମହାନ ବୈଗ୍ୟାନିକ ଖୋଜ ଉପରେ ଗର୍ବିତ ଆର ଇ ଖୋଜ ସେମାନେ ଇଂରାଜି ଭାସା ର ବିନା କରିଛନ । ୨୦୦୩ ରେ ଗଣିତ ଆର ବିଗ୍ୟାନ ର ଗବେସଣା ର ଫଲାଫଲ ର ସିଘା ନ ରହିଥିବାର ପାଁଚଟା ଦେସ (ସିଂଗାପୁର, କୋରିଆ ଗଣତଂତ୍ର, ହଂଗକଂଗ, ଚିନ, ତାଇପେଇ ଆର ଜାପାନ) ସେମାନେ ଥିଲେ ଜେନ ପହେଲା ଭାସା ଇଂରାଜି ନେଇଁସେ ।" (Ricardo and Nolasco, 2009:6)

ସେନ୍ତା ନରୱେ ର ଗ୍ଲୋବାଲ ମନିଟରିଂ ରିପୋଟ (Benson, 2005) ଥି ଇ ବୟାନ ଦିଆ ଜେଇଥିଲା:

ୟୋରୁବା ମାଧ୍ୟମ ପ୍ରାଥମିକ ସିଖ୍ୟା ଜୋଜନା (Fofunwa et al, 1975; Akinnaso 1993; Adegpiya 2003) ନୁ ପୁରା ହିସାବ ପ୍ରମାଣିତ ହେଇଗଲା କି ମାତୃଭାସା ମାଧ୍ୟମ ଥି ପୁରା ଛ ବରସର ପାଠ ଆର ଦୁସରା ଭାସା ଇଂରାଜି କେ ଗୁଟେ ବିସୟ ହିସାବେ ପଢବାର ଟା ସଂଭବ ହି ନି ଥେଇ ବରଂ ଇନୁ ପୁରା ପାଠ ଇଂରାଜି ମାଧ୍ୟମ ଥି କରବାର ନୁ ଭଲ ପରିଣାମ ଆସଲା ।"

"ଏଭେ ଏଭେ ଗବେସଣା ନୁ ଇଟା ପ୍ରମାଣିତ କରୁଛେ ଆର ମାତୃଭାସା ଆଧାରିତ ଦୁଇ ଭାସି ସିଖ୍ୟା ର ସକରାତ୍ମକ ପଖ୍ୟ କେ ସାମନା କେ ଆନବାର କେ ଆର ଆଗକେ ଜାଏସନ ।" (Benson, 2005) (ମାତୃଭାସା ଆଧାରିତ ଦୁଇ ଭାସି ସିଖ୍ୟା ର ଅର୍ଥ ଇଟା କି ମାତୃଭାସା ମାଧ୍ୟମ ଥି ସିଖ୍ୟା ମିଲୁ ଆର ବିଦେସି ଭାସା କେ ଗୁଟେ ବିସୟ ହିସାବେ ପଢା ଜଉ ।)

ଇ ହିସାବେ ଆମେ ଦେଖୁଛୁଁ ପୁରା ଦୁନିଆଁରେ ଥର ଥର ପ୍ରମାଣିତ ହେଇ ସାରିଛେ କି ସିଖ୍ୟା ଥି ଜେତକି ସଫଲତା ମାତୃଭାସା ମାଧ୍ୟମ ଥି ମିଲସି ସେତକି ସଫଲତା ବିଦେସି ଭାସା ମାଧ୍ୟମ ରୁ ନି ହେଇପାରେ । ଇଟା କହେବାରଟା ଅନୁଚିତ ନେଇସେ କି ସିଖ୍ୟା ର ସଫଲତା ଖାଲି ମାତୃଭାସା ମାଧ୍ୟମ ରେ ହିଁ ସଂଭବ ଏ । ତଲର କଥା ଇତାର କିଛି କାରଣ କେ ସାମନା କେ ଆନୁଛେ ।

"ଛୁଆ ନିଜର କଥା ନିଜର ଭାସା ଥି ସହଜ ହିସାବେ କହି ପାରସି, କାରଣ ସେଥି ତାହାକେ ଭୁଲ ହେବାର ଡର ନି ଥାଏ । ମାତୃଭାସା ଆଧାରିତ ସିଖ୍ୟା ଥି ଛୁଆ ସିଖବାର ପ୍ରକିଆ ଥି ତହଁକି କରି ଭାଗ ନେସି କାରଣ ସେତାକେ ଜେନଟା ବତା ଜାଏସି କି ପଚରା ଜାଏସି ସେଟା ସେ ବୁଝି ପାରସି । ପରିକଲ୍ପନା ର ସିରଜିନା ଆର ସତ ର ବିବରଣ ଲାଗି, ନିଜର ବିଚାର କେ ପ୍ରକାସ କରବାର ଲାଗି, ଅଲଗା ଜେନ ପରିକଲ୍ପନା ତାକର ମଗଜ ର ଭାଗ ଏ, ସେଥି ନୁଆଁ ପରିକଲ୍ପନା ଜୁଡବାର

ଲାଗି ସେ ମାତୃଭାସା କେ ସାଂଗେ ସାଂଗ ବେଭାର କରି ପାରସି । ମାତୃଭାସା ଆଧାରିତ ସିଖ୍ୟା, ସିଖ୍ୟକ ମାନକୁ ବି ସହଜ ହେସି, ବିସେସ କରି ଜେତେବେଲେ ସେମାନେ ଠାନର ଭାସା ଥି ବିଦେସି ଭାସା ନୁ ଜହ ଦଖଲ ରଖସନ । କାରଣ ଛୁଆମାନେ ନିଜକେ ଜହ ଭଲକରି ପରିପ୍ରକାସ କରିପାରସନ । ଆର ସିଖ୍ୟାକ ଜହ ଭଲ ସେ ଜାନି ପାରସି କି ଛୁଆ କାଣା ସିଖି ସାରିଛେ ଆର କେନ ଜାଗା ନ ଜହ ସହଜୋଗ ର ଦରକାର ଅଛେ । ମାତୃଭାସା ଆଧାରିତ ସିଖ୍ୟା ଲୋକର ସାମୁହିକ ଗ୍ୟାନ କେ ଇସକୁଲ ତରିକା ସାଂଗେ ଜୁଡବାର ଲାଗି ଆଧାର ବାନାସି । ମାତୃଭାସା ଆଧାରିତ ସିଖ୍ୟା ଥି ଇଟା ବି ସଂଭବ ହେସି କି ଲେଖକ ମାନକର ଦଲ, ସାସ୍କୃତିକ ଦଲ, ଆର ଦୁସରା ପ୍ରାସଂଗିକ ଲୋକର ସାଂଗେ ମିସିକରି ସିଖବାର ସାମାନ ତିଆର କରି ପାରତେ । ମାତୃଭାସା ଆଧାରିତ ସିଖ୍ୟା ମା–ବାପ କେ ବି ସହଜ ହେସି । କାଏଁଜେ ବଏଲେ ଏନ୍ତା ଥି ସେମାନେ ନିଜର ଛୁଆ ର ପାଠପଢା ଥି ଭାଗ ନେଇ ପାରବେ । ଇସକୁଲ ର ଭାସା ଆର ଦଲ ମାନକର ଭାସା ଗୁଟେ ହିଁ ଆଏ । (Ricardo and Nolasco (2009))

ଭାସାବିତ ଆର ସିଖ୍ୟାବିତ କର ଅନସାରେ ଜଦି ମାତୃଭାସା ଥି ସିଖ୍ୟା ନି ହୁଏ ତ ଛୁଆ ନିଜର କେତନି ବଛର ନୁଆଁ ଭାସା ସିଖବାର ଥି ହିଁ ବର୍ବାଦ କରିଦେସି । କାରଣ ଏନ୍ତା ଥି ଛୁଆ ଆର ସିଖ୍ୟକ ର ଧ୍ୟାନ ଭାସା ଉପରେ ହିଁ ଜମସି ଆର ବିଗ୍ୟାନ, ଗଣିତ ଆର ସାକ୍ଷରତା ଉପରେ ନଜର ନି ଜାଏ । (Ricardo and Nolaso, 2009: 11)

ଉପରେ ଆମେ ଦେଖଲାଁ କି ଦୁନିଆଁ ଭର ର ଗବେସଣା  ଆର ବିସେସଗ୍ୟଁ ଇ କଥା ର ପକ୍କା ପ୍ରମାଣ ଦେଇଛନ କି ସିଖ୍ୟା ର ସଫଲତା ଲାଗି ଖାଲି ମାତୃଭାସା ମାଧ୍ୟମ ରେ ହିଁ ସଂଭବ । ହେଲେ ଆମର ଭାରତ ନ ସିଖ୍ୟା ଆର ଭାସା ନିତି ଚଲଉଥିବାର ଲୋକମାନକର ଆଁଖି ଅଗ୍ୟାନତା ର ପଟି ବାନ୍ଧି କାନେ ଇଂରାଜି ର

ରୁଆ ଚୁଟି ଇଂରାଜି-ଇଂରାଜି କିର୍ଲଉଛନ । ଆର ଦେସର ସିଖ୍ୟା, ଭାସା ମାନକୁ ସଂସ୍କୃତି ମାନକୁ ବର୍ବାଦ କରୁଛନ । ଇ ଲେଖା ର ଉଦେସ୍ୟ ସେ ଅଗ୍ୟାନତା କେ ଭେଦବାର ଆର ଚୁଟଲା ରୁଆ କେ ହିଟାବାର ଗୁଟେ ଚେସ୍ଟା ।

ଆର୍ନ୍ତଜାତିକ ଖୋଜ ଆର ବିସେସଗ୍ୟଁ ମାନକର ଜେନ ନିସକର୍ସ ତଲେ ଦିଆ ହଉଛେ ସେଟା ଇ ଅଗ୍ୟାନତା କେ ଭେଦବା । ମାତୃଭାସା ମାଧ୍ୟମ ଖାଲି ସିଖ୍ୟା ଥି ସଫଲ ହେବାର ଲାଗି ଜରୁରି ନୁହେସେ ବରଂ ବିଦେସି ଭାସା ସିଖବାର ଲାଗି ବି ମାତୃଭାସା ମାଧ୍ୟମ ଥି ସିଖ୍ୟା ସହଜ ହେସି ।

# ୩

# ବିଦେସି ଭାସା ର ପାଠ ଆର
# ମାତୃଭାସା ମାଧ୍ୟମ ବନାମ ବିଦେସି ଭାସା ମାଧ୍ୟମ

ୟୁନସ୍କୋ ର ଉକ୍ତି ନୁ ମୁଲ କରବାର ଟା ଠିକ ହେବା ।

## ୩.୧ . ମାତୃଭାସା ଥି ସିଖ୍ୟା ଆର ବିଦେସି ଭାସା ର ପାଠ - ତିନ ଅଂନ୍ଧ ବିସ୍ୱାସ ର ଖଂଡନ

ଆମର ବାଟେ ବଡ ବାଧା ଭାସା ଆର ସିଖ୍ୟା ଲାଗି କିଛି ଅଂଧବିସ୍ୱାସ ଆର ଲୋକର ଏଁକ ଖୁଲିଦେବାର ଲାଗି ଇ ଅଂଧବିସ୍ୱାସ ମାନକର ପର୍ଦାଫାସ ଜରୁରି । ଏନ୍ତା ଗୁଟେ ଅଂଧବିସ୍ୱାସ ହଉଛେ ବିଦେସି ଭାସା ସିଖବାର ଠିକ ତରିକା ଇଟା ଆଏକି ଇତାର ସିଖ୍ୟା ର ମାଧ୍ୟମ ଭାବେ ବେଭାର ହଉ । (ଅସଲ ରେ ଭାସା କେ ଗୁଟେ ବିସୟ ହିସାବେ ପଢଲେ ଜହ ଭଲ) । ଦୁସରା ଅଂଧବିସ୍ୱାସ ଇଟା କି ବିଦେସି ଭାସା ସିଖବାର ଲାଗି ଜେତେ ଜଲଦି ମୁଲ କରାଜିବା ସେତେ ଭଲ । (ଜଲଦି ସିଖବାର ଟା ତ ଠିକ, ହେଲେ ମାତୃଭାସା ଥି ଦଖଲ ଥିଲେ ଜାଏକ ଲାଭ ମିଲସି ।) ତିସରା ଅଂଧବିସ୍ୱାସ ଇଟା ଜେ, ମାତୃଭାସା ବିଦେସି ଭାସା ସିଖବାର ଲାଗି ନକସାନ କରସି । ( ମାତୃଭାସା ଥି ଦଖଲ ଥିଲେ ଜାଏକ ବିଦେସି ଭାସା ଭଲ ସିଖି ପାରବ ।) ଫଟିକ ଜନା ପଡୁଛେ କି ଇ ସବୁ ଅଂଧବିସ୍ୱାସ ଏ, ସତ ନେଇଁସେ, ତଥାପି ନିଅମ ବାନାବାର ଲୋକ କେ ବତାସନ କି ଭାସା କେନ୍ତା କରି ସିଖା ଜାଏସି । (UNESCO 2008:12)

ଜେନ ଗବେସଣା ନୁ ଉପର ର କଥା ନିଆ ଜେଇଛେ ସେଟା ସବୁ ମାହାଦେସ ନୁ ନିଆହେଲା ୧ ୨ ଦେସର ଗବେସଣା ଉପରେ ଆଧାରିତ ଏ । ଇ ଦେସ ମାନକର ସାଂଗେ ଭାରତ ବି ସାମିଲ ଅଛେ ।

ଏନ୍ତା ଗୁଟେ ଗବେସଣା ଫିନଲେଣ୍ଡ ନୁ ସ୍ୱିଡେନ ଜଉଥିବାର ଛୁଆମାନକର ଗବେସଣା ନୁ ଜନାପଡିଛେ । ଇ ଗବେସଣା ଥି ଫିନଲେଣ୍ଡ ନ କେତନି ବଛର ସ୍କୁଲ ଜିବାର ଲାଗି ଜେତକି କେନସି ଛୁଆ ଫିନିସ ଭଲ ହିସାବେ ଜାନସି ତାର ନୁ ଜହ ଭଲ ସ୍ୱିଡିସ ସିଖସି । ଗୁଟେ ମାଁ–ବୁଆ ର ଛୁଆ ନୁ ଭାସା ଦଖଲ ଉପରେ ଦେଖଲେ ଜନାପଡସି ଜେ ଜେନ ଛୁଆ ୧୦ ବଛର ର ହାରାହାରି ବଏସେ ଫିନଲେଣ୍ଡ ନୁ ଆସିଛନ ସେମାନେ ଫିନିସ ର ଆର ସ୍ୱିଡିସ ଭାସା ର ସ୍ଥର ସ୍ୱିଡିସ ଛୁଆକର ସାଂଗେ ସମାନ ଜାରି ରଖଲେ । ଜେନ ଛୁଆ ୬ ବଛର ନୁ କମ ବଏସ ନୁ ସ୍ୱିଡେନ କେ ଆସିଛନ କି ସ୍ୱିଡେନ ନ ଜନମ ହେଇଛନ, ତାକର ଫଲ ଠିକ ନି ଥେଇ । ଏନ୍ତା ଛୁଆ ର ସ୍ୱିଡିସ ଭାସା ଥି ବିକାସ ୧ ୨ ବଛରେ ଅଟକି ଜାଏସି । କାରଣ ଫଟିକ ଜେ ତାକର ମାତୃଭାସା ଥି ନିହି ଠିକ ନେଇଁନ । (Paulston, 1977:92-93)

ବଏଲେ, ଇନୁ ଫଟିକ ଜେ ବିଦେସି ଭାସା ବି ମାତୃଭାସା ର ମାଧ୍ୟମ ଥି ପଢଲେ ବିଦେସି ଭାସା ବି ଭଲ ସେ ଆଏସି । ଏନ୍ତା କାଏଁଜେ ହେସି ତଲର କଥା ନୁ ଫଟିକ:

ବୁଜକମ (Butzkamm) ର ଆଗ୍ରହ ଜେ ବିଦେସି ଭାସା ସିଖବାର ଆର ସିଖାବାର ଥି ମାତୃଭାସା ର ଧାର ହିସାବେ ଦିଆ ଜଉଥିବା ଜୋଗଦାନ କେ ଫେର ପରିଭାସିତ କରବାର ଦରକାର ଅଛେ । ଛୁଆ ମାନେ ଜେନ୍ତା ବଡ ହେସନ:

୧ ) ସେମାନେ ଠିକସେ ପରିକଲ୍ପନା କରବାର ସିଖି ସାରିଥିସନ ଆର ଭାସା ର ପ୍ରତିକ କାମ ଉପରେ ତାକର ପୁରା ଦଖଲ ହେଇ ସାରିଥିସି

୨ ) ସେମାନେ ଭାବ ର ଆଦାନ ପ୍ରଦାନ କରବାର ସିଖି ସାରିଥିସନ

୩) ସେମାନେ ନିଜର ଭାସା ଥି କହେବାର ଆର ତାର ବେଭାର କରବାର ସିଖି ସାରିଥିସନ

୪ )ସେମାନେ ବ୍ୟାକରଣ କେ ସହଜ ହିସାବେ ବୁଝିସାରିଥିସନ ଆର ଭାସାର ଛୋଟ ଛୋଟ ବିସେନେ ଜାନି ସାରିଥିସନ

୫ )ସେମାନେ ପଢବାର ଆର ଲେଖବାର କଲା ପାଇ ସାରିଥସନ, ଇଥିର ଲାଗିବିଦେସି ଭାସା ସିଖବାର ଲାଗି ମାତୃଭାସା ସବୁ ନୁ ବଡ ପୁଂଜି । ଇଥି ଭାସା ଗ୍ରହଣ କରବାର ତରିକା ପାଇପାରସି ଆର ସବୁନୁ ବଡ କଥା ଇନୁ ସିଖ୍ୟା ହେଇପାରସି ।

ସଫଲ ଛାତ୍ର ମାତୃଭାସା ଜରିଆ ଥି ପାଏଲା ଭାସା ଆର ଗ୍ୟାନ କେ ବଡ ଭଁଡାର କେ ଆଧାର ବନେଇପାରସି । ମୁଖିଆକରି,  ତାକର ସତ କେ ନୁଆଁ ଭାସା ଥି ଫେର ପରିକଲ୍ପନା କରବାର ଦରକାର ନି ହୁଏ । ସେ ପହେଲା ଭାସା ଗ୍ରହଣ କରିସାରିଥିସି । ଆର ଇତାର ସାଂଗେ ହି କହେବାର ତରିକା ଆର ବେଭାରିକ ଗ୍ୟାନ ପାଇ ସାରିଥିସନ । ଉଦାହରଣ ହିସାବେ, ବିନତି, ଇଛା କି ଚେତାବନି ର ଭାବ ସାଧାରଣ ବାକ୍ୟ ଥି ବି ଲୁକି ଥିସନ । ମାତୃଭାସା ର ବାଟ ଦେଖାବାର ତାକତ ଇ ତଥ୍ୟ ଥି ଆଧାରିତ ନି ଥାଏ କି ଦୁହି ଭାସା ର ବ୍ୟାକରଣ ସାମାନ ହଉ । ଇଟା ଇଥିର ଲାଗି କି ସବୁ ଭାସା ର ଅଧିକାର, ଗନବାର, କର୍ତା, ସାଧନ, ମନା, କାରଣ, ସର୍ତ, ଦରକାର ବାଗିର ଭାବ କେ ପ୍ରକାସ କରବାର ତରିକା ର ବିକାସ

ହେଇ ସାରିଥିସି । ଗୁଟେ ଭାସା ର ବ୍ୟାକରଣ ଆର ଗୁଟେ ଭାସା ର ବ୍ୟାକରଣ ବତାବାର ଲାଗି ଜଜବଜ ହେଇଥିସି କାରଣ ସବୁ ଭାସା ର ପରିକଲ୍ପନା ର ଆଧାର ଗୁଟେ । (http://en.wikipedia.org/wiki/WolfgangButzkamm)

ଇହାଦେ ତକ ବତାଲା ତଥ୍ୟ ଭାରତିୟ ନିଅମ ବନଉଥିବାର ଲୋକର ଆଁଖିର ଇଂରାଜି ପଟି ଆର କାନର ଇଂରାଜି ରୁଆ ବାହାର କରବାର ଲାଗି କାଫି ଆଏ । ତଥାପି ବି ଗୁଟେ ନଜର ଇତାର ଉପରେ ବି ପକେଇ ଦେବାର କଥା କି ବାକି ଦୁନିଆଁ ନ କାଏଁଜେ ବେଭାର ହଉଛେ । ସତ ଇଟା ଜେ ଜେନ ବି ଇଂରାଜି ବିଦେସି ଭାସା ହିସାବେ ଅଛେ, ଆର ତାର ବେଭାର ସିଖ୍ୟା ର ମାଧ୍ୟମ ହିସାବେ ହଉଛେ ସେନ ଇଟା ତ ସେସ ହେଇ ସାରିଛେ ନେହେଲେ ଦିନକେ ଦିନକେ କମ ହେତେଲ ଜଉଛେ । ଇତାକେ ପ୍ରମାଣିତ କରବାର ଲାଗି କିଛି ଉଦାହରଣ ।

ୟୁଗାଣ୍ଡା ନ ୨୦୦୭ ଥି ତୟ କରିଥିଲା କି ପ୍ରାଥମିକ ସିଖ୍ୟା ପହେଲା ତିନ ବଛର ତକ ମାଧ୍ୟମ ମାତୃଭାସା ହଉ ଆର ଇଂରାଜି ଭାସା ଗୁଟେ ବିସୟ ହିସାବେ ପଢା ଜଉ । ଇତାର ଦ୍ୱାରା ସଫଲତା ବି ମିଲଲା। ୨୦୦୮ ଥି କରାହେଲା ଗବେସଣା ଥି ମିଲଲା କି ଇନୁ ସାକ୍ଷରତା ଥି ସୁଧାର ଆସିଛେ ।

ଇଟା ଧ୍ୟାନ ଦେବାର କଥା କି ୟୁଗାଣ୍ଡା ନ ୫୨ଟା ଭାସା ଅଛେ । ଉପରର ପରିବର୍ତ୍ତନ ଇ ବିଚାର ଉପରେ ଆଧାରିତ ଆଏ କି ଜଦି ଛୁଆ ର ମାତୃଭାସା ଥି ନିହି ରଖା ଜାଇସାରିଛେ ତ ସେଟା ବିଦେସି ଭାସା ଜହ ସହଜ ହିସାବେ ସିଖସି । ନୁଆଁ ନିତି ନୁ ପହେଲା ୟୁଗାଣ୍ଡା ନ ସ୍କୁଲ ସିଖ୍ୟା ମୁଳହୁ ଇଂରାଜି ଥି ହଉଥିଲା । (ଉପରର ତଥ୍ୟ ଲାଗି ଦେଖୁନ Richard M. Kavuma, www.guardian.co.uk, Friday, 22 May, 2009)

## *ଭାସା ନିତି ବାବଦେ ଅର୍ନ୍ତରାସ୍ଟ୍ରିୟ ଗବେସଣା*

ମାଲେସିଆ ୨୦୦୯ ରେ ତୟ କରିଥିଲା କି ଗଣିତ ଆର ବିଗ୍ୟାନ ସରକାରି ସ୍କୁଲ ନ ମାଲେସିଆ ଭାସା ଥି ଆର ଠାନର ସ୍କୁଲ ଚିନି ଆର ତାମିଲ ଥି ପଢା ଜଉ l (THE FLACCID MIND, Thursday, July 9, 2009)

ଭାରତ ର ନିତି ବାନାବାର ଲୋକ ର ଅଗ୍ୟାନତା ଉପରେ ଇତାର ନୁ ବଡ ଟିପନି ହେଇପାରବା କି ମାଲେସିଆ ତ ତାମିଲ ଭାସା ଲୋକର ଲାଗି ବିଗ୍ୟାନ ତାମିଲ ଥି ପଢାବାର ଠିକ ଭାବୁଛେ ହେଲେ ଭାରତ ନ ଇଟା ଗୁଟେ ଅପରାଧ ବାଗିର ଏ l ପଂଜାବି ଥି କଥା ଅଛେ ବିନା ଅକଲ ଥି ଚୁଆଁ ବି ଖାଲି ହେଇଜାଏସି l ଚୁଆଁର କଥା ଛାଡୁନ, ଭାରତ ର ଦେସି ଇଂରେଜ କର ମୁଡ ଜରୁର ଖାଲି ହେଇସାରଲା ନ l ତଥାପି ଦିରା ଆର ଉଦାହରଣ ଦେବାର ଥି କିଛି ଖରାପ ନାଇଁନ:

ଗଲା କିଛି ବଛର ହେଲା ଇଂଗଲଣ୍ଡ ଆର ନ୍ୟୁଜିଲାଣ୍ଡ ନିଜର ଦେସ ର ଅଲପ ସଂଖ୍ୟକ ମାନକର ଭାସା ଆଡକେ ଜହ ଧ୍ୟାନ ଦଉଛେ l ମାଓରି ଭାସା ଆର ସଂସ୍କୃତି ର ବିସେ ଥି ନ୍ୟୁଜିଲାଣ୍ଡ ର ଏଭର ଇତିହାସ କେ ସ. ମେଓ ଆସାବାଦି ହିସାବେ ଚିତରେଇଛନ l ନୁଆଁ ମାଓରି ମାଧ୍ୟମ ବାଲା ପ୍ରାଥମିକ ସ୍କୁଲ ମାନକର ମୁଲ୍ୟାଂକନ ବତାସି କି ଇ ଛୁଆ ର ସିଖ୍ୟା ର ବିକାସ ମୁଖିଆ ଧାରା ବାଲା ଛୁଆ ର ସାଂଗେ ସମାନ ଏ l ବରଂ ଇତାର ସାଂଗେ ସେମାନକୁ ଦ୍ୱିଭାସି ହେବାର ଲାଭ ବି ମିଲୁଛେ l ହଂଗକଂଗ ନ ଭି ମାଲେସିଆ କେ ରାଜଭାସା ଆର ସ୍କୁଲ ଆର ବିସ୍ୱବିଦ୍ୟାଳୟ ମାନକୁ ସିଖ୍ୟା ମାଧ୍ୟମ ବନେଇ ଦିଆ ହେଇଛେ l (S. Kaur Gill, pp. 135-152)A** (Ammon, 2009)

ବଏଲେ ଫଟିକ ଜେ ସବୁ ପୁରଭର ଇଂରାଜି ମେସରି ରାଏଜ ଇତାକେ ଅଲବିଦା କହି ବସୁଛନ । କାରଣ ଇଟା ହେଇଥେଇପାରେ କି କେନସି ଦେସ ବି ଭାରତିଆ ମାନକର ବାଗି ଅବୁଝ ହେଇ ରହେବାର ନି ଚାହେଁବାର ।

ହେଲେ ଭାବବାର କଥା ଇଟା ଜେ ଏନ୍ତା କାଏଁଜେ । ଇତାର ଅସଲ କାରଣ ତ ଆଧୁନିକ ବର୍ନବାଦ ଏ, ଜେନଟା ଇଂରାଜି ଭାସା କେ ହତିଆର ବନେଇକରି ସବୁ ଲାଭ କେ ହଜମ କରବାର ଚାହୁଁଛେ । ହେଲେ ସେ ବୈଚାରିକ ଆଧାର କେ ମେଟାବାର ଜରୁରି, ଜାହାର ଇ ଇଂରାଜି ମନୁବାଦ ଅପନେଇ ନେସି । ଇ ଆଧାର କିଛି ଅଂଧବିସ୍ୱାସ ଏ, ଜାହାର ଠିକ ବର୍ନନା ସ୍ଟକହୋମ ୟୁନିଭର୍ସିଟି ର ୨୦୦୫ ନ ଜାରି କଲା ରିପୋଟ ଥି ମିଲସି । (ଦେଖୁନ Benson, 2005)

## ୩.୨ ଭାସା ବିସେ ନେ ଆର କିଛି ମିଛ ଧାରଣା

### ୩.୨.୧ ଗୁଟେ ଦେସ, ଗୁଟେ ଭାସା ଅଂଧବିସ୍ୱାସ

ଇ ଉପନିବେସି ପରିକଲ୍ପନା କେନସି ରାଏଜ କେ ଗୁଟେ ସହଜୋଗି ଭାସା ର ଜରୁରି ହେସି, ଦୁନିଆଁର ଗୁର୍ଦୁ ଭାଗେ ନିଅମ ବନାଲା ଲୋକକୁ ପ୍ରଭାବିତ କରିଛେ । ହେଲେ ନା କେନସି ନିସପତି ବିଦେସି ଭାସା ଲଦଲେ କେନସି ନ ଏକତା ବାହାରିଛେ ଆର ନା ହି ସୋମାଲିଆ, ବରୁନ୍ଦି, ଖାଂଡା, ଜେନ୍ତା ଗୁଟେ ଭାସା ଚଲୁଥିବାର ଦେସେ ଥିରତା ଅଛେ । ସତ କହେଲେ, ବାଂଗଲାଦେସ, ପାକିସ୍ତାନ, ମିୟାଁମାର, ଆର ସ୍ରିଲଂକା ବାଗିର ଦେସେ ଜାତିଗତ ଆର ଭାସା ଭିନତା ସ୍ୱିକାର କରବାର ଲାଗି ଅସଫଲ ହିଁ ଅସ୍ଥିରତା ର ବଡ କାରଣ ବନିଛେ । (Quane, 2003) (Benson, 2005)

## ୩.୨.୨. ଇ ଅଂଧବିସ୍ୱାସ କି ଠାନର ଭାସା ଆଧୁନିକ ପରିକଲ୍ପନା ର ପ୍ରସାର କରି ନି ପାରନ

ଦୁସରା ଭାସା ର ମୁକାବିଲା ଥି ୟୁରୋପିୟ ଭାସା ମାନକର ଜନମଗତ ତାକତ ଗୁଟେ ଦୁସରା ଉପନିବେସି ପରିକଲ୍ପନା ଏ । ହେଲେ ଦୁନିଆଁ ର ହରେକ ଭାସା ନିଜର ବକ୍ତା ର ବିଚାର ପ୍ରକାସ କରବାର ଲାଗି ସମର୍ଥ ଏ । ଆର ଦରକାର ପଡଲେ ନୁଆଁ ତକନିକି ସବ୍ଦାବଲି ଆର ସିରଜିନା ର ବିକାସ କରବାର ସମର୍ଥ ଏ । ଇ କଥା ର ପ୍ରମାଣ ଥରେକା ଲିଓପୋଲଜ ସେଂଘର ଆଇନସ୍ଟାଇନ ର ଗୁରୁତ୍ୱାକର୍ଷଣ ସିଧାନ୍ତ ର ସେନେଗଲ ର ଭାସା ବୋଲେଫ ଥି ଅନୁବାଦ କରି କରି ଦେଲେ । ଅସଲ ଫରକ ଇଟା କି ଲିଖିତ ଆର ପ୍ରକାସନ ର ଜରିଆ ବୌଧିକତା ର ବିକାସ ଲାଗି ଐତିହାସିକ ତରିକା ରେ ଗୁଟେ ଭାସା ର ଛାଁଟା ହେଇଛେ ।

ଜେନ୍ତା ଉପରର କଥା ନୁ ଫଟିକ ଏ ଜେ ସବୁ ଭାସା ନ ଇ ତାକତ ଅଛେ କି ପରିକଲ୍ପନା କେ ପରିପ୍ରକାସ କରା ଜେଇପାରବା । ହେଲେ ଇ ବିସେ ନେ ଏତକି ଅଗ୍ୟାନତା ଫଏଲିଛେ ଜେ ଇତାକେ ପେସରେଇ କରି କହେବାର ଜରୁରି ଏ ।

ବାକ୍ୟ ଗଠନ ର ଆଧାର ଥି ଇ ସବୁ ନି କହି ହୁଏ କି କେନ ଭାସା ଜହ ସଖ୍ୟମ ଆର କିଏ କମ । ସବୁ ଭାସା ର ବାକ୍ୟ ଗଠନ କମ ବେସି ତଫାତ ରେ ଏକାବାଗିର ଆନ । କେନସି ଦୁଇଟା ଭାସା ର ବ୍ୟାକରଣ ନେଇକରି ଦୁଇ ପୃସ୍ଠା ପଢଲେ ଇଟା ଫଟିକ ହେଇଜିବା । ଜେନ ଭାସା ର ବ୍ୟାକରଣ ଲେଖା ନି ଜେଇ ସେତାର ବି ବାକ୍ୟ ରଚନା ସେନ୍ତା ସଂବୃଦ୍ଧ ହେସି ଜେନ୍ତା ଲିଖିତ ବ୍ୟାକରଣ ବାଲା ଭାସା ର । ଅସବିଧା କରସି ସବ୍ଦାବଲି । ପ୍ରାୟ ସୁନବାର କେ ମିଲସି ଆମର ଭାସା ଥି ବିଗ୍ୟାନ ଆର ତକନିକି ବାଗିର ସିଖ୍ୟା ଲାଗି ସବ୍ଦ ନେଇଁନ । ହେଲେ ଇ ବିଚାର ସତକଡା ସହେ ଭାଗ ଅଗ୍ୟାନତା ଆଧାରିତ ।

ଅସଲ ଥି ସବୁ ଭାସା ର ସଦ୍ଦ ସକତି ସମାନ ଥିସି । କାରଣ ସବୁ ଭାସା ର ପୁରା ସଦ୍ଦାବଲି କିଛି ମୁଲ ଜିନିସ ନୁ ବନିଥିସି । ଇ ମୁଲ ଜିନିସ ର ପ୍ରସଂଗ ନୁ ଭାସା ମାନକୁ କେନସି ତଫାତ ନି ଥାଏ । ଉଦାହରଣ ହିସାବେ:

1. “Haem. A prefix signifying blood.
2. Haemacyte. A blood cell.
3. Haemagogue. Medicine that promotes the catamenial and haemorrhoidal discharges.
4. Haemal. Pertaining to the blood.
5. Haemalopia. An effusion of the blood into the globe of the eye; bloodshot eye.
6. Haemngiectasis. Dilatation of a blood vessel.
7. Haemangioma. A malformation of a blood vessels which may occur in any part of the body.
8. Haemarthrosis. The presence of blood in a joint cavity.
9. Haematemesis. The vomiting of blood.
10. Haematin. An iron-containing constituent of haemoglobin.
11. Haematinic. An agent improving the blood-quality.
12. Haematinuria. The presence of haematin in the urine.
13. Haematocele. A swelling filled with blood; haematoma.
14. Haematocolpos. Retention of the menses due to a congenital obstruction of vagina.
15. Haematogenesis. The development of the blood.
16. Haematoid. Having the nature or appearance of blood.
17. Haematology. The science dealing with the formation, composition, functions and diseases of the blood.
18. Haematolysis. Destruction of blood cells and liberation of haemoglobin.
19. Haematoma. The blood tumour; H. Auris, the blood tumour of the external.” (Rawat, 1985)

ଦେଖଲେ ଏନ୍ତା ଲାଗବା କି କୋସଲି ଭାସା ଥି ଇ ସଦ୍ଧ ମାନକର ସମାନ ଅର୍ଥ ବାଲା ସଦ୍ଧ ନେଇଁନ । ହେଲେ ସତ ଇଟା ଜେ ଇ ସବୁ ସଦ୍ଧ ଗୁଟେ ଧାତୁ Haem (ରକ୍ତ) ସାଂଗେ ଭିନେ ଭିନେ ଉପସର୍ଗ ଲଗେଇକରି ବନିଛେ । ତଲେ ଦେଲା ଇତାର କୋସଲି ସମାନ ଅର୍ଥ  ଦେଖୁନ:

୧) ରକତ ୨) ରକତ କୋସିକା ୩) ରକତ-ପେସୁ ୪) ରକତିୟ ୫) ରକତ ଅଁଖା ୬) ରକତବାହିନି ପେସରାବା ୭) ରକତ- ମସା ୮) ରକତ-ଜୋଡ ବିକାର ୯) ରକତ-ବୁଠି ୧୦) ଲୁହା-ରକତିଆ ୧୧) ରକତ-ବଢଉ ୧୨) ରକତ-ମୁତ ୧୩) ରକତ -ଫୁଲା ୧୪) ରକତ-ମାସିକଧରମ-ରୋଧ ୧୫) ରକତ ଉପଜାବାର ୧୬) ରକତ-ରୁପ ୧୭) ରକତ-ବିଗ୍ୟାନ ୧୮) ରକତ-କମି ୧୯) ରକତ ଘା

ତ ଇଟା କହେବାର କି ଆମର ଭଅସା ଥି ସବଦ ନେଇଁନ ବଲବାର ଟା କେନସି ଭାସା ବାବଦେ ଅଗ୍ୟାନତା ଛଡା କିଛି ନେଇଁସେ । ଉପରର ଇଂରାଜି ସଦ୍ଧ ଗ୍ୟାନ ବିଗ୍ୟାନ ଆର ଇଂରାଜି ଭାସା ର ବାବଦେ ଆର ଗୁଟେ ତଥ୍ୟ ଉଜାଗର କରୁଛେ । ଇ ସଦ୍ଧ ସବୁ ଗୁଟେ ବି ଇଂରାଜି ସଦ୍ଧ ନୁହସେ । ସିଧା ଲାଟିନ ନୁ ଉତରା ହେଇଛେ । ତ ଇଟା ଭାବବାର ଟା ବି କେତନି ମୁର୍ଖାମି ଏ, କି ଜଦି ଆପନକୁ ଇଂରାଜି ଭାସା ଆସୁଛେ ତ ଆପଣକୁ ଗ୍ୟାନ ବିଗ୍ୟାନ ର ସଦ୍ଧାବଲି ବୁଝି ପାରବେ । କାରଣ ଇଂରାଜି ଭାସା ଥି ଜହ ଗ୍ୟାନ ବିଗ୍ୟାନ ର ସଦ୍ଧ  ଲାଟିନ, ଗ୍ରିକ ଆଦି ଭାସା ମାନକର ନୁ ଆନଲା ଟା ।

ଆର ଗୁଟେ ଭୁଲ ଧାରଣା ଫଏଲି କରି ଅଛେ ଜେ ଇଂରାଜି ଗ୍ୟାନ ଆପଣକୁ ଦୁନିଆଁର ସବୁ ଦ୍ୱାର ଖୁଲି ଦେବା । ବଏଲେ ଦୁନିଆଭର ଇ ବିସେ ନେ କାଣା ହଉଛେ ବି ଜାନବାର ଜରୁରି ଏ ।



# ଇହାଦେ ର ଆର୍ନ୍ତଜାତିକ ଭାସା ର ଢଲନି

ଇହାଦେ ର ସମିଆଁ ଥି ଦୁନିଆଁ ନ ଦୁଇ ଭାସି ଢଲାନ ଫଟିକ ହିସାବେ ଦେଖବାର କେ ମିଲସି । ଗୁଟେ ଇଂରାଜି ଭାସା ର ବଢତି କମ ହଉଛେ ଆର ଦୁସରା ବିନଇଂରାଜି ଭାସା ମାନକର ସବୁ ଆଡେ ଜରୁରି ବଢୁଛେ ।

ଆମେ ପହେଲା ହି ଦେଖି ସାରିଛୁଁ ଜେନ ବିନ ଇଂରାଜି ଭାସି ଦେସ ନ ବି (ମହାନ ଭାରତ ଆର ତାର ଜୁନ୍ହା ଭାଇ ଆର ଇହାଦେର ଭୌଗୋଲିକ ଆର ମାନସିକ ପଡୋସି ପାକିସ୍ଥାନ କେ ଛାଡିକରି) ସିଖ୍ୟା ଇଂରାଜି ଭାସା ଥି ଜିଆ ଜଉଥିଲା । ସେନ ଇଂରାଜି ଖତମ ହଉଛେ ନେହେଲେ ଦିନକେ ଦିନକେ ଇଂରାଜି ଭାସା ସିଖ୍ୟା ର ମାଧ୍ୟମ ହିସାବେ କମ ହେତେଲ ଜଉଛେ । ଦୁସରା ଆଡେ ବି ଏନ୍ତା ହଉଛେ ।

୨୦୦୦ ଆଡକେ ଇଂଟରନେଟ ନ ୮୦ ସତକଡା  ନୁ ଜହ ଜାନକାରି ଇଂରାଜି ଭାସା ଥି ମିଳୁଥିଲା । ଇହାଦେ ସେଟା ୪୦ ସତକଡା ନୁ ବି କମ ହେଇଗଲା ନ । ଆର ଇହାଦେ ଇଂଟରନେଟ ନ ହଜାର ହଜାର ଭାସାନେ ସୁଚନା ମିଳୁଛେ ।

ଭାରତ ର କଥା ବି ହେମା ବଏଲେ ମାଇକ୍ରୋସଫ୍ଟ କଂପାନି ହିସାବେ ଭଅରତ ର ୯୫ ସତକଡା ବେପାର ବିନ-ଇଂରାଜି ଭାସା ମାଧ୍ୟମ ନ ହେସି ଆର ଖାଲି ୫ ସତକଡା ଇଂରାଜି ଭାସା ମାଧ୍ୟମ ଥି ।

୨୦ଭାସା ଜାନସନ ଆର କେନସି ଦୁସରା ଭଅସା ନି ଜାନନ, ତ କେନସି ବି କଂପାନି  ଆପଣଙ୍କୁ ସବକିରର ପଛେ ନୌକରି ଦେବା । ତଲର ଧାଡି ଇ କଥା ର ପ୍ରମାଣ କି ଦୁନିଆଁର ଦିଗ କେନ ଆଡକେ ଜଉଛେ:

ଆଝିରର ଦଫତର ମାନକୁ ଇଂରାଜି ଛଡା ଅଲଗା ଭଅସା ଥି କହିକରି ଆର ଲେଖିକରି ସଂଚାର କରି ପାରବାର ଦରକାର ।  (Stephanie Bell Rose, TheGoldman Sachs Foundation, Vishakha Desai, The Asia Society

ଜେନ୍ତା ଦୁସରା ଦେସ ବିଦେସି ଭାସାମାନକୁ ତହଁକାବାର ଲାଗି ଆର୍ଥିକ ଆର ନିତିଗତ ପାହା ପକଉଛେ, ବିସେସଗ୍ୟଁ ମାନକାର ବିଚାର କି ଆମେରିକା ର ଛାତ୍ର ଇଥି ପଛାଡେ ରହୁଛନ ଆର ଦୁନିଆଁର ବଜାର ନୁ ନୁକସାନ ଉଠଉଛନ । (Asia Society News, 2nd April, 2009)

ଇଂରାଜି  ଜେନ ଥିତି ୨୦ତମ ସତାବ୍ଦି ର ସେସ ତକ ହାସିଲ କରି ସାରିଥିଲା, ୨୧ ତମ ସତାବ୍ଦି ତକ କେନସି ଭାସା ର ଏନ୍ତା ଥିତି ନି ରହେ । ଇଂରାଜି ଆର ସୁଚନା ତକନିକି ର ସଂପର୍କ ଛନେକର ହେଇପାରେ  । ଜେନ୍ତା ପହେଲା ଇଂରାଜି ଭାସି ବାଲେ ସବୁ ନୁ ବଢିଆ ଆର ନୁଆଁ ତକନିକି ର ଲାଭ ଉଠଉଥିଲେ । ଇହାଦେ ସେଟା ଆର ନେଇଁ ନ । (David Graddol, 2000 (1997) ପୁରା ଦୁନିଆଁ  ଥି ସବୁ ବିକସିତ ଦେସମାନକର ପ୍ରାୟ ସବୁ ସ୍କୁଲ ଥି ମାତୃଭାସା ଛଡା ଅଲଗା ଭାସା ମାନକର ସିଖ୍ୟା ଦେବାର ଚେସ୍ଟା କରାହଉଛେ । ଆର ଇଦୁସରା ଭାସା ଖାଲି ଇଂରାଜି ନେଇଁସେ ।

ଅସ୍ଟ୍ରେଲିଆ ଏସିଆ ଅଧ୍ୟୟନ ପାଠ୍ୟକ୍ରମ କାର୍ଯ୍ୟକ୍ରମ ଥି ତୟ କରିଥିଲା କି ସବୁ ସ୍କୁଲ ନ ଗୁଟେ ଏସିଆର ଭାସା ପଢବାର ଜରୁରି ହେବା । (Phillip Coorey, The Sydney Morning Harald, October 29, 2012)

ଏନ୍ତା ଜେ ଆମେରିକା ନ ଚିନି ଭାସା ମାଧ୍ୟମ ଥି ସିଖ୍ୟା ଦଉଥିବା ସ୍କୁଲ ଖୁଲି ଗଲା ନ ଆର ସେ ଭିତରେ ୯୦ ସତକଡା ନୁ ଜହ ଛାତ୍ର ବିନ ଚିନି ଭାସି ଆନ । (ହେବାରଟା ଭୁଲ ନିତି ଆଏ, ହେଲେ ଇଟା ବତଉଛେ କି ଚିନି ଭାସା ସିଖବାର ଲୋକର ସଂଖ୍ୟା ୨୦୦୦ ର ହିସାବେ ୧୦ ଗୁଣା ଥିଲା । (USA Today, 20th November, 2007)

ଆମେରିକା ନ ତ ମାଁ-ବୁଆ ବିନ ଇଂରାଜି ଭାସା ସିଖବାର ଥି ଲାଗିଛନ । କାରଣ ସେମାନେ ନିଜର ଛୁଆକେ ଅଲଗା ଭାସା ସିଖବାର ଥି ସହଜୋଗ କରି ପାରବେ । (Education Update, 15 March, 2013)

ଦୁନିଆଁର ଅର୍ଥ ବେବସ୍ଥା ଥି ଚିନ ର ବଡଭାରି ପ୍ରଭାବ ଦେଖିକରି ପାନାମା ସବୁ ଇସକୁଲ ମାନକୁ ଚିନି ଭାସା ର ସିଖ୍ୟା ଜରୁରି କରବାର କେ ଜଉଛେ ।

ଏନ୍ତା ଜେ ମୁଖିଆ ଇଂରାଜି ଭାସା ଦେସ ମାନକୁ ବି ବିନ ଇଂରାଜି ଭାସି ଲୋକ ଇଂରାଜି କେ ଛାଡୁଛନ । ଆମେରିକା ନ ୨୦୯୦ ଥି ୩ କୋଟି ୧୮ ଲାଖ ଲୋକ ରେଜିସ୍ଟର କରିଥିଲେ କି ଘରେ ଇଂରାଜି ନି କହନ । ୨୦୦୦ ର ଜନଗଣନା ଥି ଇ ସଂଖ୍ୟା ୪ କୋଟି ୭୦ ଲାଖ ହେଇଗଲା । ଇ ବଢତି ଇ ଭାସା ମାନକର ସଂଖ୍ୟା ର ବଢତି ଦର ନୁ କେତନି ଜହ ଏ । ଇ ବଛର ମାନକୁ ସପେନି ଭାସା ୬୦ ସତକଡା ବଢିଛେ । ୧୯୮୦ ରୁ ୨୦୧୧ ତକ ଆମେରିକା ନ ଘରେ ବିନଇଂରାଜି ଭାସା କହେବାର ଲୋକର ସଂଖ୍ୟା ୧୪୦ ସତକଡା ବଢିଛେ । ଇ ସଂଖ୍ୟା ର ବଢତି ନୁ କେତନି ଜହ ଏ ।

ପୁରୁବ ଇଂରାଜି ଉପନିବେସ ନ କେନ୍ତା ଇଂରାଜି ସଂଚାର ମାଧ୍ୟମ ନୁ ହଟୁଛେ ଇତାର ଗୁଟେ ବଢିଆ ପ୍ରମାଣ ଆର୍ଜେନ୍ଟିନା ର ଇ ଅଂକ ଏ: ୧୯୮୩ ନ ଆର୍ଜେନ୍ଟିନା ର ସଂଚାର ବେବସ୍ତା ର ୪୯ ସତକଡା ଦେସର ବାହାରୁ ଥିଲା ଜେନଟା ୧୯୯୬ ଥି କମିକରି ୨୨ ସତକଡା ହେଇଗଲା ।

ବଏଲେ, କେନସି ସଂଦେହ ନି ରହେବାର କି ଜେନ ଆଡେ ପହେଲା ଇଂରାଜି ର ଦବଦବା ଥିଲା ସେ ସବୁ ଆଡେ ଇଂରାଜି ଦିନକେ ଦିନ କମ ହେତେଲ ଜଏଛେ ।

ଇ କଥା କେ ବି ଟିକେ ଧ୍ୟାନ ଦେବାର ଜରୁରି ଏ କି ଇଂରାଜି ଭାସା ଲାଗି ଆମର କେତେ ସିଖ୍ୟାର, ଆର୍ଥିକ, ବେପାରି, ଆର ଭାସାଗତ ନୁକସାନ ହେତେଲ ଆଉଛେ ।



# ଇଂରାଜି ଭାସା ଉପରେ ଗର୍ବ କରିକି ନୁକସାନ

ଏଜ ଦୁନିଆଁର ପ୍ରାୟ ସବୁ ଦେସ ଦରକାର ଅନସାରେ ଦୁସରା ଦେସର ଭାସା ସିଖବାର ଲାଗିଛନ । ହେଲେ ଆମେ ଇଂରାଜି ରସମାଧି ଥି ଲଟକି କରି ବସିଛୁଁ । ଆମେ ଇଂରାଜି ଛଡା ଅଲଗା କେନସି ବିଦେସି ଭାସା କେ ସିଖବାର  ଧ୍ୟାନ ନି ଦେବାର ଜେନଥିର ଲାଗି କେତନି ବେପାରର ନୁକସାନ ହଉଛେ ।  ଜଦି ଆମେ ଦୁସରା ଦସର ଭଅସା  ନି ସିଖୁଁ ତ ଆଗାମି ଦିନକେ ଏକଲା ହେଇଜିମାଁ । ଏଜ ଆମର ଲାଗି ଇଂରାଜି ଜହ ଚିନି ଆର ସ୍ପେନି ଦରକାରି ଏ । ହେଲେ ଭବିସ୍ୟତ କାଣା ଆମେ ତ ଇହାଦେ ନୁ ଏଁକ ମୁଜି କରି ବସିଛୁଁ । ଏଜ ଦୁନିଆଁର ପ୍ରାୟ ସବୁ ବିନଇଂରାଜି ଭାସି ଦେସ ନିଜର ଦେସ ନୁ ଇଂରାଜି ଭାସା ର ପ୍ରଭାବ କେ ଖତମ କରବାର ଥି ଲାଗିଛନ ।  ଆମେ ନିଜର ସବୁ ସିଖ୍ୟା, ସଂସ୍କୃତି, ସଂଚାର, ଇଂରାଜି ଭାସା ନ ଉଲଦି ଦଉଛୁଁ । ଇନୁ ଆମକେ ଲାଭ କେତେ ହଉଛେ ଦେଖବାର ଲାଗି ଭାରତ ର ଦୁନିଆଁ ର ବେପାର ଥି ଲଗାତାର ଭାଗ କମ ହଉଛେ, ପରଖି ନେବାର କଥା ।

ଇଂରାଜି ଭାସା ଥି ସିଖ୍ୟା ନୁ ଆମକୁ କେତେ ଫାଏଦା ହେଇଛେ ଇଟା ଆମର ଉଁଚା ସିଖ୍ୟା ର ଅବସ୍ଥା ନୁ ଫଟିକ ବାରି ହେସି । ଭାରତ ନ ଗଲା ୧୫୦ ବଛର ଥି ଉଁଚା ସିଖ୍ୟା ର ସ୍ତର ଉପରେ ବିଗ୍ୟାନ ସିଖ୍ୟା, ଇଂରାଜି ଭାସା ଥି ହଉଛେ । ହେଲେ ଆମର ଗୁଟେ ବି ବିସ୍ୱବିଦ୍ୟାଳୟ ଦୁନିଆଁର ପହେଲା ୨୦୦ ବିସ୍ୱବିଦ୍ୟାଳୟ ଭିତରେ ଗନତି ଥି ନି ଆସେ । ଜାପାନ, ଚିନ, କୋରିଆ, ରୁସ ବାଗିର ଦେସ ନିଜର ସବୁ ସିଖ୍ୟା ନିଜର ଭାସା ମାନକୁ ଦଉଛନ । ପରିଣାମ ହିସାବେ ତାକର

ବିସ୍ୱବିଦ୍ୟାଲୟ ର ସ୍ଥର ଆମର ବିସ୍ୱବିଦ୍ୟାଲୟ ନୁ କେତନି ବନେ । ଆମର ସିଖ୍ୟା ର ଅସକଟିଆ ସ୍ଥର ର ସବୁନୁ ବଡ କାରଣ ସିଖ୍ୟା ର ଇଂରାଜି ଭାସା ଥି ହେବାର ।

ସେସକେ ଆର ଗୁଟେ  କଥା ଭାରତ ପ୍ରେମି କର ସାମନେ ଆନବାର ଜରୁରି । ଆଝିର ଜୁଗ ଥି କେନସି ବି ଭାସା ର ଜିବନ ଆର ବିକାସ  ଇ କଥା ଉପରେ ନିର୍ଭର କରସି କି ସେ ଭାସା ର ବେଭାର ସିଖ୍ୟା ର ମାଧ୍ୟମ ହିସାବେ ହଉଛେ କି ନେଇଁ । କେନସି ବି ଭାସା ର ଖତମ ହେବାର ଥି ସବୁନୁ ବଡ କାରଣ  ସେ ଭାସା ର ସିଖ୍ୟା ଥି ବେଭାର ନି ହେବାର ଟା ।  ସିଖ୍ୟା ପ୍ରଣାଲି ଥି ଠାନର ଭାସା ଥି ନି ହେବାର ଲାଗି ବି ଭାସା ମାନେ ମେଟି ଜଉଛନ ।  ଭାସା କେ ବଁଚେଇରଖବାର ଆର ସଂସ୍କୃତି କେ ବଁଚେଇ ରଖବାର ଇସକୁଲ ର ଭୁମିକା କେତନି । (Eckert, T. et al, 2006)

ତଲର ଧାଡି ଭାସା ଲୋପ ହେବାର ପ୍ରକ୍ରିୟା କେ ବତଉଛେ ।

ଲୋକ ନିଜର ଭାସା ଥି କଥା ହେବାର କେ ଲାଜେ ହେସନ ଆର ସେନ ଉଁଚା ରୁବାବ ବାଲା ଭାସା ର ବେଭାର କରସନ । ଇତାର ଦ୍ୱାରା ତାକର ଛୁଆ ମାନକର ତକ ଭାସା ର ସଂଚାର ନି ହେଇ ପାରେ । ଏନ୍ତା ଅଲପ ସଂଖ୍ୟକ କେ ତାର ବକ୍ତା କହେବାର ଛାଡିଦେସନ ଆର  ସଂପର୍କିୟ ଭାସା ର ବେଭାର କରି ଲଗାତାର  କମି ବସସି । ଜେବତକ କି ନୁଆଁ ଭାସା ଇତାର ପୁରା ଠାନ ଆବରି ନି ବସେ । (McMohan, 1994 : 285)

ଜଦି ଭଲ କରି ଦେଖା ଜାଏ ତ ସବୁ ଭାରତିୟ ଭାସା ମାନକର ସ୍ଥିତି ଇ ହିସାବେ ଲଗାତାର ଖରାପ ହେତେଲ ଜଉଛେ ।

ଜେଭୁ ଭାରତ ନ ସ୍କୁଲ ମାନକୁ ଇଂରାଜି ମାଧ୍ୟମ ର ଚଲବାର ବଢିଛେ । ତାର ଉତାରୁ ଥିତି ର ଜଦି ଲେଖା ଜୁଖା କରା ଜିବା ତ ଗୁଟେ ଭୟାନକ ଦୁରୁସ ଦେଖବାର କେ ମିଲସି ।

ଇଂରାଜି ମାଧ୍ୟମ ର ଚଲନ ନୁ ଭାସା ମାନକର ଅପାରୁ ଗୁଟେ ପିଢି ଠିଆ ହଉଛେ ।  ଜିଏ କେନସି ଭଅସା ଥି ସଖ୍ୟମ ନୁହେସେ ।  ମାତୃଭାସା ତ ଇ ପିଢି ଠିକ ସେ ସିଖି ନି ପାରବାର ଇଥିର ଲାଗି କାରଣ ଇତାକେ ଇଂରାଜି ମାଧ୍ୟମ ଥି ପଢା ଜଉଛେ । ଇ ପିଢି ର ଛୁଆ କେ ଇଂରାଜି ର ଠିକ ବିକାସ ଇଥିର ଲାଗି ନି ହେଇପାରବାର କାରଣ କେନସି ବି ଛୁଆ ଜିଏ ମୁଲୁ ନୁ ହିଁ ବିଦେସି ଭାସା ମାଧ୍ୟମ ନୁ ପଢସି ତାର ଭାସାଗତ ତାକତ ର ବିକାସ ହି ଠିକ ନି ହେଇପାରେ । ଏନ୍ତା ଥି ସେ କେନସି ଭାସା ବି ଠିକ ସେ ସିଖି ନି ପାରେ ।

ଇଂରାଜି ଆମର ବାଟେ ଆର ବିଦେସି ଭାସା ସିଖବାର ଥି ବଡା ଅଲଝନ ବନିଛେ । ଜେନଟାକି ଆଝିର ଦିନେ ବେପାର, ଆର୍ଥିକ, ସଂପର୍କ ଅର ଜାନକାରି ଲାଗି ନିହାତି ଜରୁରି । ଦୁନିଆଁ ନ ଇଂରାଜି କେ ଛାଡିକରି ଅଲଗା ଭାସା ସିଖବାର ଜେନ ତୁଫାନ ଉଠିଛେ ଆର ବିନ ଇଂରାଜି ଭାସା ଆର୍ଥିକ ହିସାବେ କେତନି ଜରୁରି ବନିଗଲେ ନ, ଇଟା ଆମର ଆଧୁନିକ ମାହରାଜା ଲୋକ ଦେଖି ନି ପାରନ କାରଣ ତାକର ଆଁକି ଇଂରାଜି ଭାସା ର ପଟି ବଂଧା ହେଇଛେ ଆର କାନେ ଇଂରାଜି ରୁଆ ଚୁଟା ହେଇଛେ ।  ଫଲ ହିସାବେ ଭାରତିୟ ସିଖ୍ୟା, ସାସନ, ଗ୍ୟାନ ବିଗ୍ୟାନ ଆର ସଂସ୍କୃତି ର ନକସାନ । କେନସି  ଆସରିଜ ହେବାର କଥା ନେଇଁ ନ କି ଇ ସବୁ ଆଧାର ଉପରେ ଭାରତ ଦୁନିଆଁ ର ବହୁତ ପଛଡିଆ ଦେସେ ସାମିଲ ଅଛେ । ଭାରତର ଆର୍ଥିକ ସକ୍ତି ଆର ବିକାସ ର ଅନୁମାନ ତ ଦୁନିଆଁ ନ ଭାରତର ଭାଗ ର ସଂଖ୍ୟା ଫଟିକ ହେଇଜାଏସି । ଜେନଟା ୧୯୫୦ ନ ୧.୭୮ ସତକଡା ଥିଲା ଆର ଏଜ ୧.୫୦ ସତକଡା  । ଇ ସତକଡା ହି ଇ କଥା ର ପ୍ରମାଣ ଏ ।

ସାଂସ୍କୃତିକ ବର୍ବାଦି କେ ତ କଥା ହି ନି କହୁନ । ଗୁଟେ ଏନ୍ତା ପିଢି ବନୁଛେ ଜିଏ ନା ନିଜାର ଭାସା , ନା ଇତିହାସ, ନା ସାହିତ୍ୟ, ନା ଧର୍ମ, ନା ଗ୍ୟାନ ବିଗ୍ୟାନ ଆର ନା ନିଜର ଲୋକ ସାଂଗେ କେନସି ଗୁହେର ସଂପର୍କ ବନେଇ ପାରବା । ଆର ନା ତ କଲାତ୍ମକ ସିରଜିନା ର କେନସି ଗହନ ଅନୁଭୁତି ସାଂଗେ ଅପନାପନ ବନେଇପାରବା । ଗୁରୁ ନାନକ ସେ ବେଲକେ ଫରାସି ଭାସା ର ଭିଡ ଭିତରେ ଫସଲା ଲୋକମାନକୁ ମ୍ଲେଛ ଭାସା ବାଲେ କହିଥିଲେ । ଇହାଦେ ଜେତେବେଲେ ଭାରତର ଉଁଚା ବର୍ଗ ବାବା ନାନକ କର ସଂଦେସ କେ ଏତେ ଗୁହେରୁ ତାପିଦେଲେ ଜେ ବିଚରା ଗାଂଧି ମାହାତ୍ମା ର କିଏ ସୁନବା ।  ସେ ତ ଖାଲି ଧୁତି ପିନ୍ଧସି । ଭାରତର ସଂସ୍କୃତି କେ ବାଏ ବାଏ କହିକରି, ଟାଏ ବାଏ ଲଗାତା ତ କଥା ଥିଲା ।

## ଅନୁରୋଧ

ଇ ଆଲେଖ ବୈଗ୍ୟାନିକ ଭାସା ନିତି ଉପରେ ମୋର ତରଫ ନୁ ତିଆର କରା ଜଉଥିବା ବହି ର ଅଂସ ନୁ ନେଇକରି ବନା ହେଇଛେ । ବହି ଥି ଟିକେ ସମିଆଁ ଲାଗୁଥିଲା ହେଲେ ବିସୟ ଏତେ ଜରୁରି ହେଇଗଲା କି ମୁଇଁ ଭାବଲିଁ କି କିଛି ଭାଗ ଆନିକରି ଇ ଆଲେଖ ଜଲଦି ଭାରତିୟ ନାଗରିକ ମାନକର ସାମନେ ରଖବାର କଥା । ଇଥିର ଲାଗି ଇ ଆଲେଖ ହିନ୍ଦି ଥି ଲେଖା ହେଇଛେ । ଜହ ନୁ ଜହ ଭାରତିୟ ଇତାକେ ପଢି ପାରବେ ଆର ନିଜର ନିଜର ଭାସା ଥି ଅନୁବାଦ କରି ଇ କଥା ଜହ ନୁ ଜହ ଲୋକ ତକ ପହଁଚେଇ ପାରବେ । ସେଥିର ଲାଗି ସମକୁ ଅନୁରୋଧ କି ଇତାର ଭିନେ ଭାସା ଥି ଅନୁବାଦ କରୁନ ଆର ଜହ ନୁ ଜହ ଲୋକକେ ପଢଉନ ।

ଇ ଆଲେଖ ଥି ଗୁର୍ଦୁ ଗ୍ୟାନି ମାନକର ଗୁର୍ଦୁ ଗବେସଣା ଉତରେଇଛେଁ । ସେ ସବୁ ଗ୍ୟାନି ମାନକୁ ହାର୍ଦିକ କୃତଗ୍ୟଁତା ଜନଉଛେଁ । ଇଟା ତାକର ମେହନତ ର ଲ ଆଏ କି ମାତୃଭାସା କେ ଏତେ ବଡ ବୈଚାରିକ ଆଧାର ମିଳିପାରୁଛେ ।

## ସଂଦର୍ଭ

Ammon, Ulrich. 2009. Book Review. Medium of Instruction Policies.

Which Agenda? Whose Agenda? by J.W. Tollefson and A.B.M. Tsui (eds). Mahwah, NJ and London: Lawrence, Erlbaum, 2004.

Eckert, T. et al. 2006. Is English a 'killer language', The globalisation of a code. ethistling.

Benson, Carol. 2005. The Importance of Mother Tongue-based Schooling for Educational Quality, Commissioned study for EFA Global Monitoring Report. Centre for Research on Bilingualism. Stockholm University.

Graddol, David. 2000 (1997). The Future of English? A Guide to Forecasting the Popularity of the English Language in the 21st century. The Bitish Council.

Modiano, N. 1966. Reading Comprehension in the National Language: A Comparative Study of Bilingual and All Spanish Approaches to Reading Instruction in Selected Indian Schools in the Highlands of Chiapas Mexico. Ph.D. Dissertation, University of New York.

1973. Indian Education in the Chiapas Highlands. New York: Holt, Rinchart, and Winston.

Paulston, C.B. 1977. Research In Bilingual Education: Current Perspectives. Linguistics. pp. 87-151.

Rawat, P.S. 1985 (1995). Midline Medical Dictionary. New Delhi: B Jain Pvt. Publishers Ltd.

RICARDO MA. DURAN NOLASCO. 2009. 21 Reasons why Filipino children learn better while using their Mother Tongue: A PRIMER on Mother Tongue-based Multilingual Education (MLE) & Other Issues on Language and Learning in the Philippines. Guro Formation Forum, University of the Philippines.

Skutnabb-Kangas, T. 1975. Bilingualism, Semi-bilinguism, and Social Achievment. Paper Presented at the 4th Internaitonal Congress of Applied Linguistics. Stuttgart. and P. Toukomaa. 1976. Teaching Migrant Children's Mother-Tongue and Learning the Language of the Host Country in the Context of the Socio-cultural Situation of the Migrant Family. Helsinki: The Finnish National Commission for UNESCO.

Spolsky, B. 1977. American Indian Bilingual Education. Linguistics 19:57-72.

Tucker, G.R. 1977. Bilingual Education: Current Perspectives, Vol. 2.

Linguistics. Arlington, VA : Centre for Applied Linguistics.
UNDP Report. 2004.

Unesco. 1953. The Use of Vernacular Languages in Education.

Monographs on Fundamental Education, No. 8. Paris.
Unesco. 1968.

Unesco. 2008. The Improvement in the Quality of Mother Tongue - Based Literacy and Learning. Bankok: Unesco.

*****